

## କବିତା

# ବର୍ଷାଗମେ (ବାଲ୍ମୀକି ରାମାୟଣରେ)

**କବିତାର ବିଷୟ:** କିଷ୍କିନ୍ଧା କାଣ୍ଡ ସର୍ଗ **28**ରେ ଶ୍ରୀରାମଙ୍କ ଦ୍ୱାରା ଅନୁଜ ଲକ୍ଷ୍ମଣ ଆଗରେ ବର୍ଷାଋତୁ ବିଷୟକ ବର୍ଣ୍ଣନ । ଉକ୍ତ ସର୍ଗର ସମସ୍ତ **66**ଟି ପଦର ଅନୁବାଦ ଏଥିରେ ଅଛି । ଅନୁଦିତ ଶେଷ ପଦ **66** ପରେ ବାଲ୍ମୀକି ରାମାୟଣରୁ ମୂଳ ରଚନା ସମସ୍ତ **66**ଟି ସଂସ୍କୃତ ପଦ ମଧ୍ଯ ସଂସ୍କୃତପ୍ରିୟଙ୍କ ନିମନ୍ତେ ଦିଆ ଯାଇଛି ।

**ପ୍ରଯୁକ୍ତ ଛନ୍ଦ:** ଏହି ଅନୁବାଦରେ ମୁଖ୍ୟତଃ ଇନ୍ଦ୍ରବଜ୍ରା ଛନ୍ଦ ପ୍ରଯୁକ୍ତ ହେଇ ଥିଲେ ହେଁ ପଦ **17 64 65** ଓ **66**ରେ ଦୁଇଟି ଛନ୍ଦର - ଇନ୍ଦ୍ରବଜ୍ରା ଛନ୍ଦ ସହ ଉପେନ୍ଦ୍ରବଜ୍ରା ଛନ୍ଦର ପାଦମାନ ମିଶ୍ରିତ ଅଛି । ଫଳସ୍ୱରୂପ ଏହି **4**ଟି ପଦ ଇନ୍ଦ୍ରବଜ୍ରା ଓ ଉପେନ୍ଦ୍ରବଜ୍ରା ଛନ୍ଦର ମିଶ୍ରଣର ଉତ୍ପନ୍ନ ଉପଜାତିର ଛନ୍ଦୋବିଶେଷ । ଏହି ମିଶ୍ରଣ ଶାସ୍ତ୍ରସମ୍ମତ ଅଟେ ।

**ଛନ୍ଦୋଲକ୍ଷଣ:** ଇନ୍ଦ୍ରବଜ୍ରା ଓ ଉପେନ୍ଦ୍ରବଜ୍ରା
ଛନ୍ଦର ଲକ୍ଷଣ ଏହିପରି —
**ଇନ୍ଦ୍ରବଜ୍ରା:** ତୌ ଜଗୌ ଗଃ ଅର୍ଥାତ୍ ତଗଣ ତଗଣ ଜଗଣ ଓ ଦୁଇଟି ଗୁରୁବର୍ଣ୍ଣ ଆର୍ଥାତ୍ **221/221/121 +22** - ଏହିପରି ଏଗାର ବର୍ଣ୍ଣ ।
**ଉପେନ୍ଦ୍ରବଜ୍ରା:** ଜତୌ ଜଗୌ ଗଃ ଅର୍ଥାତ୍ ଜଗଣ ତଗଣ ଜଗଣ ଓ ଦୁଇଟି ଗୁରୁବର୍ଣ୍ଣ ଅର୍ଥାତ୍ **121/221/121 +22** - ଏହିପରି ଏଗାର ବର୍ଣ୍ଣ ।
**ପ୍ରତୀକ:** ଏଥିରେ **1** ଲଘୁବର୍ଣ୍ଣର ଓ **2** ଗୁରୁବର୍ଣ୍ଣର ପ୍ରତୀକ ।

**ବିନୀତ:** ଲଲାଟେନ୍ଦୁ କବି (ଅନୁବାଦକ)
ଭୁବନେଶ୍ୱର **May 22, 2023**

# ବର୍ଷାଗମେ



====
କବିତା: ବର୍ଷାଗମେ ଛନ୍ଦ: ଇନ୍ଦ୍ରବଜ୍ରା
(ତଗଣ ତଗଣ ଜଗଣ+ଗୁରୁ)
221/221/121+22
ପ୍ରସ୍ତାରେ: 11/356
====
ବାଳୀକି ହତ୍ୟା କରି ରାମଚନ୍ଦ୍ର
ସମ୍ପାଦି ସୁଗ୍ରୀବ-ନୃପାଭିଷେକ
ମାଲବ୍ୟ ପୃଷ୍ଟେ ରଚି ସଂନିବାସ
ଶ୍ରୀ ଲକ୍ଷ୍ମଣେ ଡାକି କହନ୍ତି ଭାଷା ।
04.28.01
ନୃପ-ଅଭିଷେକ= ରାଜ-ଅଭିଷେକ;
L. Kabi 20230509

ସମ୍ପ୍ରାପ୍ତ ବର୍ଷା ଋତୁ ଦେଖ ଏବେ
ଭୂଲୋକ ବକ୍ଷେ ଜଳ ହେବ ପୂର୍ଣ୍ଣ ।
ଏ ଦେଖ ଉର୍ବୀଧରଶୃଙ୍ଗ ପାଶେ
ଆକାଶ ଆଚ୍ଛାଦିତ ମେଘମାଳେ ।
04.28.02
ଉର୍ବୀଧର= ପର୍ବତ;
L. Kabi 20230509

ସୂର୍ଯ୍ୟଙ୍କ ତାପେ ନବମାସ କାଳ
ଅମ୍ଭୋଧି-ପାନୀୟ ଭରି ସ୍ୱଗର୍ଭେ
ସେ ନୀର ଏବେ ଧରଣୀର ବକ୍ଷେ
ପୀୟୂଷ ଯେହ୍ନେ ଘନ ଦେବ ଢାଳି ।
04.28.03
ଅମ୍ଭୋଧି-ପାନୀୟ= ସମୁଦ୍ରଜଳ;
L. Kabi 20230509

ସୋପାନ ସୋପାନ ପୟୋଦ ମାଳେ
ପାବଚ୍ଛ ଯେହ୍ନେ ଚଢି ଧୀର ପାଦେ
ସୂର୍ଯ୍ୟଙ୍କୁ ଏ କୂଟଜ ପୁଷ୍ପମାଳା
ପିନ୍ଧାଇ ବା ଲେଉଟି ଆସି ହେବ ।
04.28.04
ପୟୋଦ= ମେଘ;
L. Kabi 20230509

ସନ୍ଧ୍ୟାର ରଙ୍ଗେ ବହୁ ତାମ୍ର ଚିତ୍ର
ବିକ୍ଷିପ୍ତ ଭାବେ ପରିଦୃଶ୍ୟ ଉର୍ଦ୍ଧ୍ୱେ ।
ଯେହ୍ନେ କିଏ ତା କ୍ଷତ ବାନ୍ଧି ବସ୍ତ୍ରେ
ସେ ବସ୍ତ୍ର ରକ୍ତେ ଶତଧା ପ୍ରସିକ୍ତ ।
04.28.05
ତାମ୍ର= ନାଲିଛିଆ;
L. Kabi 20230509

ନୀଳାମ୍ବରେ ଅମ୍ବୁଦ ମାଳ ଦୋଳେ
ଧୀର ପ୍ରବାତେ ଭିଜି ରକ୍ତ ରଙ୍ଗେ ।
ନିଃଶ୍ୱାସ ତେଜେ ଅଭିକା କିଏ ବା
ସିନ୍ଦୂରମସ୍ତା  ବିଷୟାନୁରାଗେ ॥
04.28.06
ବିଷୟ= କାମନା; ଅନୁରାଗ= ପ୍ରେମ;
L. Kabi 20230508

ରୌଦ୍ରେ ପ୍ରତପ୍ତା ଘନ ବୃଷ୍ଟିପାତେ
ଉପ୍ଲାବନେ ଶାନ୍ତସମୁଦ୍ରବସ୍ତ୍ରା ।
ଯେମନ୍ତ ସୀତା ବିରହପ୍ରଦଗ୍ଧା
ଆକଣ୍ଠ ତେଜେ ଅବରୁଦ୍ଧ ବାଷ୍ପ ॥
04.28.07
ସମୁଦ୍ରବସ୍ତ୍ରା= ପୃଥିବୀ;
L. Kabi 20230509

ମେଘୋଦର-ଛିଦ୍ରପଥେ ବିବୃତ୍ତ
କହ୍ଲାର ପୁଷ୍ପେ ପ୍ରତିହା୍ର ତୁଲ୍ୟା
ଏ କେତକୀଗନ୍ଧ ମିଶା ଅନୁଷ୍ଣା
ସ୍ନିଗ୍ଧାଞ୍ଜତୀ ଅଞ୍ଜଳି-ରନ୍ଧ୍ରଭୋଗ୍ୟା ।
04.28.07.08
= *ମେଘର ଉଦରରେ ଛିଦ୍ରପଥଦେଇ ନିର୍ଗତ*
*ଧଳାପଦ୍ମର ସ୍ୱର୍ଣ୍ଣତୁଲ୍ୟ ଶୀତଳ କେତକୀର*
*ଗନ୍ଧମିଶ୍ରିତ ସ୍ନିଗ୍ଧ ଅଞ୍ଜତୀ (ବାୟୁ) କୁ (ନାକ ତାଙ୍କି)*
*ଅଞ୍ଜଳି( ର ଛିଦ୍ର) ଦେଇ ଶୁଙ୍ଘି ନେବା କଥା ।*
କହ୍ଲାର= ଧଳାପଦ୍ମ; ପ୍ରତିହାର= ସ୍ୱର୍ଣ୍ଣ;
ଅନୁଷ୍ଣ= ଶୀତଳ; ପ୍ରାଣାନ୍ତ(କ)= ବାୟୁ;
L. Kabi 20230510

# ବର୍ଷାଗମେ

====
କବିତା: ବର୍ଷାଗମେ ଛନ୍ଦ: ଇନ୍ଦ୍ରବଜ୍ରା
(ତଗଣ ତଗଣ ଜଗଣ+ଗୁଗୁ)
221/221/121+22
ପ୍ରସ୍ତାରେ: 11/356
====
କବିତା: ବର୍ଷା ଛନ୍ଦ: ଇନ୍ଦ୍ରବଜ୍ରା
(ତଗଣ ତଗଣ ଜଗଣ+ଗୁଗୁ)
221/221/121+22
ପ୍ରସ୍ତାରେ: 11/356
====
ଏ କେତକୀ ଅର୍ଜ୍ଜୁନ-ଗନ୍ଧହୃଷ୍ଟ
ବୈରୀ ବିନାଶେ ଉପଶାନ୍ତ-ଚିତ୍ତ
ବର୍ଷାସଲୀଳେ ଅତି ମନ୍ତ୍ରମୁଗ୍ଧ
ଲାଗେ ଧରାଭୃତ୍ ନବ ଆନ୍ତରୀକ୍ଷେ ।
04.28.07.09
ଧରାଭୃତ୍= ପର୍ବତ; ଆନ୍ତରୀକ୍ଷ= ବର୍ଷା;
L. Kabi 20230510

ସୁଶ୍ୟାମ ଜୀମୂତ-ଶରୀର ଶୈଳ
ବା କୃଷ୍ଣସାର-ତ୍ୱଗ୍ବ-ବସ୍ତ୍ରଧାରୀ
ଧାରା ପ୍ରବାହେ ଅବଘଟ୍ଟ-ଶବ୍ଦେ
ମନ୍ତ୍ର ପ୍ରଘୋଷେ ଉପବୀତଧାରୀ
04.28.07.10
କୃଷ୍ଣସାର-ତ୍ୱଗ୍ବ= କୃଷ୍ଣସାର ମୃଗର
ଚର୍ମ; ଅବଘଟ୍ଟ= ଗୁମ୍ଫା;
L. Kabi 20230510

ସ୍ୱର୍ଣ୍ଣାଭ ବିଦ୍ୟୁତ୍ ଖଳିନ ପ୍ରହାରେ
ପୀଡାର୍ତ୍ତ ଶବ୍ଦେ ବିରବ ପ୍ରସର୍ଜୀ
ଆକାଶ ଲାଗେ ସହସା ସତେ ବା
ଶାସେ କିଏ ସେ ଅତି ଦୁଷ୍ଟ କେଶୀ ।
04.28.11
ଖଳିନ= ଚାବୁକ୍; କେଶୀ= ଘୋଡା;
L. Kabi 20230510

ଅମ୍ଭୋଦ କୋଳେ ସ୍ଫୁରିତା ଛଟାଭା
ଯେମନ୍ତ ଚାହେଁ ଲଭିବାକୁ ମୁକ୍ତି ।
ସେ ଦୃଶ୍ୟ ଲାଗେ ଦଶଶୀର୍ଷ କୋଳେ
ସୀତାଙ୍କ ସଂଘର୍ଷ - ଯିବେ କୁଟୀରେ ।
04.28.12
ଅମ୍ଭୋଦ= ମେଘ; ଛଟାଭା= ବିଜୁଳି;
L. Kabi 20230510

ନାନା ଦିଶାରେ ଘନ କୃଷ୍ଣ ମେଘେ
ନକ୍ଷତ୍ରମାଳା ନ ଦିଶନ୍ତି ନେତ୍ରେ ।
ବିଚ୍ଛେଦ ପୀଡା ବଢିବାର ନାହିଁ
ପ୍ରେମୀ ନିମନ୍ତେ ହିତ ପୟୋଗର୍ଭ ।
04.28.13
ପୟୋଗର୍ଭ= ମେଘ;
L. Kabi 20230510

ସୌମିତ୍ରି ଏ ଶୈଳ ତଟେ ନିରେଖ
ମୋ ଶୋକ ଊଣା କରିବା ନିମନ୍ତେ
କେମନ୍ତ ଏ କୂଟଜ ପୁଷ୍ପ ରାଜି
ବର୍ଷାଜଳେ ସ୍ୱାଗତ କାର୍ଯ୍ୟମଗ୍ନ ।
        04.28.14
ତଟ= ଗଡାଣି, slope;
L. Kabi   20230510

ତୌଷାର ବାୟୁ ପ୍ରକୃତିସ୍ଥ ଧୂଳି
        ଉତ୍ତାପ ପୀଡା ଗତ ଆଜ ଦୂରେ ।
ରାଜାଗଣଙ୍କ ସ୍ଥିତ ଯୁଦ୍ଧଯାତ୍ରା
        ଆବର୍ତ୍ତନେ ବ୍ୟସ୍ତ ବିଦେଶବାସୀ ।
        04.28.15
ତୌଷାର= ଥଣ୍ଡା; ସ୍ଥିତ= ବନ୍ଦ, ସ୍ଥଗିତ;
ଆବର୍ତ୍ତନ= ବାହୁଡା;
L. Kabi   20230510

କେ ମାନସେ ଚାଲିଅଛନ୍ତି ମାର୍ଗେ
          ଖୋଜି ପ୍ରିୟା-ସଂଯୁତ ଚକ୍ରବାକ ।
ବର୍ଷାରୁ ବିକ୍ଷିପ୍ତ ପଥେ ଚଳେ ନା
        ଗୋଯାନ ଏବେ ନିକଟେ କି ଦୂରେ ।
        04.28.16
ମାନସ= ମାନସ ସରୋବର; ପ୍ରିୟା-ସଂଯୁତ=
ପ୍ରିୟା ସହ ମିଳିତ; ବିକ୍ଷିପ୍ତ= distorted;
ଗୋଯାନ= ଶଗଡ;
L. Kabi   20230510

କବିତା: ବର୍ଷାଗମେ

---

ଛନ୍ଦ: ଉପଜାତି (ଇନ୍ଦ୍ରବଜ୍ରା+ ଉପେନ୍ଦ୍ରବଜ୍ରା)

*ତଗଣ ତଗଣ ଜଗଣ+ ଗୁଗୁ & ଜଗଣ ତଗଣ ଜଗଣ+ ଗୁଗୁ)*

**(221/221/121+22 & 221/221/121+22)**

ପ୍ରସ୍ତାରେ: 11/356 & 357

---

କ୍ୱଚିତ୍ ପ୍ରଦୃଷ୍ଟ କ୍ୱଚିତ୍ ଅପ୍ରଦୃଷ୍ଟ
ନିର୍ମୋକ ଆଚ୍ଛାଦିତ ଖଣ୍ଡମେଘେ
କ୍ୱଚିତ୍ କ୍ୱଚିତ୍ ପର୍ବତ ପଶ୍ଚଦେଶେ
ଲାଗେ ଯଥା ଶାନ୍ତ ଜଳେନ୍ଦ୍ର ରୂପ ।
04.28.17

ପ୍ରଦୃଷ୍ଟ= ଦୃଶ୍ୟମାନ; ନିର୍ମୋକ= ଆକାଶ;
ପଶ୍ଚ= ପଛ, ଆଢୁଆଳ; ଜଳେନ୍ଦ୍ର= ସମୁଦ୍ର;

L. Kabi 20230513

L. Kabi 20230510

---

ଛନ୍ଦ: ଇନ୍ଦ୍ରବଜ୍ରା ପ୍ରସ୍ତାରେ: 11/356

ଗଣ: ତଗଣ ତଗଣ ଜଗଣ + ଗୁ ଗୁ

ବର୍ଣ୍ଣ: 221/221/121 + 22

---

ସମ୍ମିଶ୍ରଣେ ଶାଳ, କଦମ୍ବ ପୁଷ୍ପେ
ସ୍ରୋତ୍ୟାଜଳେ ଧାତବ ତାମ୍ରବର୍ଣ୍ଣ
ଦୀପ୍ତାକ୍ଷ କେକାରବରେ ନିମଗ୍ନ
ପାର୍ବତ୍ୟ ଧାରା ତ୍ୱରିତା ସ୍ୱମାର୍ଗେ ।
04.28.18

ସ୍ରୋତ୍ୟା= ନଦୀ; ଦୀପ୍ତାକ୍ଷ= ମୟୂର;

L. Kabi 20230510

ନିର୍ଯ୍ଯାସଗର୍ଭ ଭ୍ରମରଙ୍କ ଲେହ୍ୟ

ଏ ଜମ୍ବୂ ହର୍ଷେ ବିତରନ୍ତି ଲୋକେ ।

ନାନାଦି ରଙ୍ଗେ ହସିବାର ଆଗେ

ବିକ୍ଷିପ୍ତ ବାତେ ଫଳ ଆମ୍ରଡାଳୁ ।

04.28.19

ନିର୍ଯ୍ଯାସଗର୍ଭ= ରସାଳ; ଜମ୍ବୂ= ଜାମୁକୋଳି;

L. Kabi 20230510

ଶୈଳେୟ ଚୂଳେ ବକପଙ୍କ୍ତି-ମାଳା

ବିଦ୍ୟୁତ୍-ପତାକା ଧରି ତାର ସଙ୍ଗେ

ଉଦ୍ଘୋଷଣେ ବ୍ୟସ୍ତ ପୟୋଦପଙ୍କ୍ତି

ଯେମନ୍ତ ଯୁଦ୍ଧେ ଗତିମାନ୍ ମତଙ୍ଗେ ।

04.28.20

ଶୈଳେୟ= ପର୍ବତ; ପୟୋଦ= ମେଘ;

ମତଙ୍ଗ= ହାତୀ;

L. Kabi 20230513

ବର୍ଷାଜଳେ ଶ୍ୟାମଳ ଘାସ ଦୀପ୍ତ

ନୃତ୍ୟୋତ୍ସବେ ମଗ୍ନ ମୟୂର ପଙ୍କ୍ତି

ବର୍ଷା ସରନ୍ତେ ଜଳ ସାରି ମେଘ

ସନ୍ଧ୍ୟାଗମେ ଦୃଶ୍ୟ ମନୋଜ୍ଞ ଭାରି ।

04.28.21

L. Kabi 20230513

ନୀର ପ୍ରଭାରେ ବକପଙ୍କ୍ତି ସଙ୍ଗେ

ପର୍ଣ୍ଣାଶନେ ଗର୍ଜନ ଛାଡି ଉଢେ

ଅତ୍ୟୁଚ୍ଚ ଶୃଙ୍ଗେ ନଗମାଳ ଶୀର୍ଷେ

ବିଶ୍ରାମ ଘେନନ୍ତି ପୁନଃ ଚଳନ୍ତି ।

04.28.22

ପ୍ରଭାରେ= ଓଜନରେ; ପର୍ଣ୍ଣାଶନ= ମେଘ; ନଗ=ପର୍ବତ;

L. Kabi 20230513

ଜୀମୂତକାମୀ ବକ ମାଳ ମାଳ
ଉଡ୍ଡୀନ ହର୍ଷେ ଘନମେଘ ପାଶେ
ସେ ଦୃଶ୍ୟ ଲାଗେ ବକପଙ୍କ୍ତି ଯେହ୍ନେ
ପୁଂନା୍ଗ ମାଳା ଘନ କଣ୍ଠଦେଶେ ।
04.28.23
ପୁଂନାଗ= ଧଳା ପଦ୍ମ;
L. Kabi 20230513

ବିଶ୍ୱମ୍ଭରେ ଶ୍ୟାମଳ ଘାସ-ପତ୍ରେ
ମଧ୍ୟେ ବିମଧ୍ୟେ ବହୁ ଇନ୍ଦ୍ରଗୋପେ ।
ଶୋଭେ ସତେ କା ଶୁକ୍ଳବର୍ଣ୍ଣ-ବସ୍ତ୍ରେ
ମଞ୍ଜିଷ୍ଠ ବର୍ଣ୍ଣୋକ୍ଷିତ ବସ୍ତ୍ର ସାରା ।
04.28.24
ବିଶ୍ୱମ୍ଭରା= ପୃଥିବୀ; ବିମଧ୍ୟ= ମଧ୍ୟ; ଇନ୍ଦ୍ରଗୋପ=
ସାଧବ ପୋକ; ମଞ୍ଜିଷ୍ଠ= ନାଲି; ବର୍ଣ୍ଣ-ଉକ୍ଷିତ=
ରଙ୍ଗରେ ଛିଟ ଦିଆ:
L. Kabi 20230513

---

ଛନ୍ଦ: ଇନ୍ଦ୍ରବଜ୍ରା ପ୍ରସ୍ତାରେ**:** 11/356
ଗଣ: ତଗଣ ତଗଣ ଜଗଣ + ଗୁ ଗୁ
ବର୍ଣ୍ଣ: 221/221/121 + 22

---

ବର୍ଷାଗମେ ବିଷ୍ଣୁ ଗମନ୍ତି ନିଦ୍ରା
ସ୍ରୋତ୍ୟା ଗମେ ଶୀଘ୍ର ସମୁଦ୍ର ପାଶେ
ହୃଷ୍ଟା ବଳାକା ଘନ ପାଶ ଧାଏଁ
କାନ୍ତା ଗମେ ତା ପ୍ରିୟ କାନ୍ତ ପାଶେ ।
04.28.25
ସ୍ରୋତ୍ୟା= ନଦୀ; ଶୀଘ୍ର= ସବେଗ; ହୃଷ୍ଟା=
ଆନନ୍ଦିତା; ବଳାକା= ବଗୁଲୀ; କାନ୍ତା= ପ୍ରେମିକା; କାନ୍ତ= ପ୍ରେମିକ;
L. Kabi 20230513

ଆରଣ୍ୟ କେକୀକୁଳ ଲାସ୍ୟମଗ୍ନ,

ଶୋଭାର ସମ୍ଭାର କଦମ୍ବ ଶାଖା ।

ଉସ୍ର ପ୍ରଧାବୀ ବହୁଳାର ପଶ୍ଚାତ୍,

ଶସ୍ୟେ ହସେ ଭୂତଳ ବୃଷ୍ଟି କାଳେ ।

04.28.26

ଆରଣ୍ୟ= ବନସ୍ଥ; କେକୀ= ମୟୂର; ଲାସ୍ୟ= ନାଚ; ଉସ୍ର= ଷଣ୍ଢ; ପ୍ରଧାବୀ= ଚାଲି ଥାଏ; ବହୁଳା= ଗାଈ;

L. Kabi 20230514

ବର୍ଷେ, ପ୍ରଧାବେ, ଗରଜେ, ବିଭାସେ,

ଧ୍ୟାନସ୍ଥ, ନୃତ୍ୟେ, ପୁଣି କେହି ମୌନେ ।

ମେଘ, ସ୍ରବନ୍ତୀ, ଗଜ, ବନ୍ୟଭୂମି,

ପ୍ରେମପ୍ରଲବ୍ଧା, ମରୁକ, ପ୍ଲବଙ୍ଗେ ।

04.28.27

ପ୍ରଧାବେ= ଧାଏଁ; ବିଭାସେ= ଉଜ୍ଜ୍ୱଳ ଦିଶେ; ସ୍ରବନ୍ତୀ= ନଦୀ; ପ୍ରେମପ୍ରଲବ୍ଧା= ବିରହିଣୀ; ମରୁକ= ମୟୂର; ପ୍ଲବଙ୍ଗ= ମୃଗ ମାଙ୍କଡ ବେଙ୍ଗ ଇତ୍ୟାଦି;

L. Kabi 20230514

ସୌଗନ୍ଧ ଏ କେତକ ସୁପ୍ରସନ୍ନ

ଆଘ୍ରାଣରେ ମାଦକମତ୍ତ ହସ୍ତୀ

ସୂଚ୍ଚ ସୁଶବ୍ଦେ ସଲିଳପ୍ରପାତେ

କେକାରବେ ମୁଗ୍ଧ, ବଜାନ୍ତି ଭେରୀ ।

04.28.28

ସୌଗନ୍ଧ= ସୁଗନ୍ଧିତ; କେତକ= କେତକୀଫୁଲ; ସୂଚ୍ଚ= ସୁ ଉଚ୍ଚ; ସଲିଳପ୍ରପାତେ= ଜଳପ୍ରପାତ; କେକା= କେକୀ ବା ମୟୂର ମିନଙ୍କ ଶବ୍ଦ; ଭେରୀ= ଯୁଦ୍ଧନିଷଦ;

L. Kabi 20230514

ବର୍ଷା ପ୍ରହାରେ ସ୍ଥିତ ଏ କଦମ୍ବେ

ଦୋଳନ୍ତି ଡାଳେ ମଧୁଲେହ ପଙ୍କ୍ତି ।

ଏକ କ୍ଷଣେ ଶୋଷି ରସ ପ୍ରସୂନେ

ଉତ୍ସର୍ଜି ଧୀରେ ମଦିରା ପ୍ରଭାବ ।

04.28.29

ମଧୁଲେହ= ମହୁମାଛି; ଉତ୍ସର୍ଜି= ଉତାରି; ମଦିରା ପ୍ରଭାବ= ନିଶା, ମାଦକତାର ପ୍ରଭାବ, intoxication;

L. Kabi 20230514

ଅଙ୍ଗାର ଗୋଳାର ବିତାନ ତୁଲ୍ୟ

ଜାମ୍ବୁ-ପ୍ରଶାଖା ଫଳଭାରପୂର୍ଣ୍ଣା ।

ନିର୍ଯ୍ୟାସରେ ପୂରିତ ଜାମ୍ବୁ ପାଶେ

ଆନନ୍ଦରେ ବିଶ୍ରମୁଛନ୍ତି ଭୃଙ୍ଗେ ।

04.28.30

ବିତାନ= ଗଦା; ନିର୍ଯ୍ୟାସ= ରସ; ଭୃଙ୍ଗ= ଭ୍ରମର;

L. Kabi 20230514

ବିଦ୍ୟୁତପୃତାକା କରି ମାର୍ଗସଜ୍ଜା

ଅତ୍ୟୁଚ୍ଚ ଗମ୍ଭୀର ମହା ବିଘୋଷେ

ଆକାଶରେ ଶୋଭିତମେଘପଙ୍କ୍ତି

ଲାଗେ ଯଥା ଯୁଦ୍ଧପଥେ ପ୍ଳବଙ୍ଗେ ।

04.28.31

ବିଘୋଷ= ଗର୍ଜନ; କୁଶାକ୍ଷ= ମାଙ୍କଡ;

L. Kabi 20230515

ଉର୍ବୀଧରେ ଉଚ୍ଚପଥାନୁସାରୀ

ହସ୍ତୀ ଯୁଥେ ମେଘରବେ ସତର୍କ

ଯୁଦ୍ଧାଙ୍ଗନ-ଶ୍ରାବିତ ଭାଳି ପଶ୍ଚାତ୍

ଚାହାନ୍ତି ମାର୍ଗେ ଥିବ କେହି ଦୂରେ ।

04.28.32

ଉର୍ବୀଧର= ପର୍ବତ; ଉଚ୍ଚପଥାନୁସାରୀ= ଉଚ୍ଚ ପଥର ଆନୁଗାମୀ; ଯୁଥ= ଗୋଠ; ଶ୍ରାବିତ= ଡାକରା; ପଶ୍ଚାତ୍= ପଛକୁ;

L. Kabi 20230515

ଏ ପାଶରେ ଗୁଞ୍ଜିତ ପୁଷ୍ପଲେହୀ

ସେ ପାଶରେ ନୃତ୍ଯନିମଗ୍ନ କେକୀ

ଅନ୍ୟତ୍ର ମାତଙ୍ଗ ବିମତ୍ତ ନୀରେ;

ନାନାଦି ଦୃଶ୍ୟେ ପରିପୂର୍ଣ୍ଣ ସତ୍ତ୍ର ।

04.28.33

ଗୁଞ୍ଜିତ= ଗୁଞ୍ଜରଣରତ; ପୁଷ୍ପଲେହୀ= ଭ୍ରମର; ମାତଙ୍ଗ= ହାତୀ; ସତ୍ତ୍ର= ଅରଣ୍ୟ;

L. Kabi 20230515

ପ୍ରାରୋହ ଶାଳାର୍ଜ୍ଜୁନ ଓ କଦମ୍ବେ

ପୂର୍ଣ୍ଣା ଧରିତ୍ରୀ ନବବାରି ସିକ୍ତା ।

ଲାଗେ ସତେ ବା ମଦିରା ପ୍ରଶାଳା

ବାଳା-ମୟୂରୀ ରବଗୀତନୃତ୍ୟେ ।

04.28.34

ପ୍ରାରୋହ= ଗଜା; ଶାଳାର୍ଜ୍ଜୁନ= ଶାଳ ଓ ଅର୍ଜ୍ଜୁନ;
ମଦିରା ପ୍ରଶାଳା= ମଦ ବାର୍ (bar);
L. Kabi 20230516

ମୁକ୍ତା ପ୍ରମାଣେ ଜଳବିନ୍ଦୁ ବର୍ଷି

ସୁସ୍ୱଚ୍ଛ ଉର୍ବୀରୁହ ଡାଳ ପତ୍ରେ ।

ଆନନ୍ଦରେ ସେ ପ୍ରଭୁଦତ୍ତ ନୀର

ସେବନ୍ତି କେତେକ ବିବର୍ଣ୍ଣ ପକ୍ଷୀ ।

04.28.35

ଉର୍ବୀରୁହ= ଗଛ;
L. Kabi 20230516

ଷଟ୍ପାଦ କଣ୍ଠେ ମଧୁମନ୍ଦ ବୀଣା

ମଣ୍ଡୂକ ସର୍ଜେ ରସନ ସ୍ୱଭାବେ ।

ଆରମ୍ଭ ମାତ୍ରେ ଜଳଦେ ମୃଦଙ୍ଗ

ସଂଗୀତମଞ୍ଚେ ବନ ଭୂମି ହର୍ଷେ ।

04.28.36

ଷଟ୍ପାଦ= ଭ୍ରମର; ମଣ୍ଡୂକ= ବେଙ୍ଗ; ରସନ= ଶବ୍ଦ; ସଂଗୀତମଞ୍ଚ= ସଂଗୀତ ଆସର, orchestra;
L. Kabi 20230516

ଏ ଅଞ୍ଚଳେ ନୃତ୍ତ ପରତ୍ର ନାଦୀ

ଅନ୍ୟତ୍ର ବା ବୃକ୍ଷଶିରେ ନିବାସୀ

କେ ପୁଚ୍ଛ ଆଲମ୍ବି ମହୀଜ ଶାଖେ

ସଂଗୀତରେ ବର୍ହିକୁଳ ପ୍ରମତ୍ତ ।

04.28.37

ନୃତ୍ତ= ନୃତ୍ୟରତ; ପରତ୍ର= ଆନ୍ୟଠାରେ; ନାଦୀ= ନାଦରତ; ଆଲମ୍ବି= ଝୁଲାଇ; ମହୀଜ= ଗଚ; ବର୍ହିକୁଳ= ମୟୂର ଦଳ;
L. Kabi 20230516

ନାନାଦି ରୂପୀ ବହୁ ରଙ୍ଗଧାରୀ

ନାନା ନିନାଦେ ମୁଖର ପ୍ଲବଙ୍ଗେ ।

ଏ ସଦ୍ୟ ବର୍ଷାଜଳରାଶି ଦୃଶ୍ୟେ

ନିଦ୍ରା  ବିସର୍ଜି ସ୍ୱର ସମ୍ପ୍ରବୃତ୍ତ ।

04.28.38

ରୂପୀ= ରୂପଧାରୀ; ପ୍ଲବଙ୍ଗ= ବେଙ୍ଗ; ସମ୍ପ୍ରବୃତ୍ତ= ପ୍ରବୃତ୍ତ;

L. Kabi   20230516

ପ୍ରଭ୍ରଷ୍ଟ ତୀରେ କରି ଧୌତ ବେଗେ

ସଙ୍ଗେ ଧରି ହ୍ଲାଦିତ ଚକ୍ରବାକେ

ଧାବନ୍ତି ଅର୍ଣ୍ଣା ପତି ସିନ୍ଧୁ ପାଶେ

ଯେମନ୍ତ ଦୃପ୍ତା ତରୁଣୀ ଅଭୀଷ୍ଟେ ।

04.28.39

ପ୍ରଭ୍ରଷ୍ଟ= ଭଙ୍ଗା; ହ୍ଲାଦିତ= ଇନନ୍ଦିତ; ଅର୍ଣ୍ଣା= ନଦୀ; ଅଭୀଷ୍ଟ= ପ୍ରେମିକ, ସ୍ୱାମୀ;

L. Kabi   20230516

ଆଲମ୍ବି ସୁଶ୍ୟାମଳ ମେଘମାଳେ

ଅନ୍ୟାନ୍ୟ ସୁଶ୍ୟାମଳ ମେଘମାଳା

ବିଭ୍ରାନ୍ତି ଜାଗେ ଦହିଲା ପରାୟେ

ଦାବାଗ୍ନିଦଗ୍ଧଙ୍କୁ ଦବାଗ୍ନି ଅନ୍ୟେ ।

04.28.40

ଆଲମ୍ବି= ଆଉଜି; ଦାବାଗ୍ନିଦଗ୍ଧ= ବନାଗ୍ନିରେ ଦଗ୍ଧ (ପର୍ବତ);

L. Kabi   20230516

ଉତ୍ଫୁଲ୍ଲ ସଂନାଦିତ ବର୍ହିସଣ୍ଡ୍ରେ

ଦନ୍ତେୟଗୋପାକୁଳ ଭୂମି ସାରା

ନୀପାର୍ଜ୍ଜୁନେ ପୂର୍ଣ୍ଣ ସୁଗନ୍ଧମତ୍ତ

ଚାଲନ୍ତି ହସ୍ତୀ ସହଜ ସ୍ୱଭାବେ ।

04.28.41

ସଂନାଦିତ= ରଡୁଥିବା; ବର୍ହି-ସଣ୍ଡ= ମୟୂରଙ୍କ ବନ; ଦନ୍ତେୟଗୋପାକୁଳ= ଦନ୍ତେୟଗୋପ (ଇନ୍ଦ୍ରଗୋପ ବା ସାଧବ ପୋକ)ରେ ଆକୁଳ; ନୀପାର୍ଜ୍ଜୁନେ= ନୀପ (କଦମ୍ବ) ଓ ଅର୍ଜ୍ଜୁନ ଫୁଲରେ;

L. Kabi   20230516

ବର୍ଷାପ୍ରକୋପେ ହତ ପଦ୍ମ ଦେଖି
କାସାର ତେଜି ଭ୍ରମରେ ଚଳନ୍ତି
ପୁଷ୍ପାସବେ ପୂର୍ଣ୍ଣ କଦମ୍ବ ପାଶେ
ଆନନ୍ଦଚିତ୍ତେ ଦଳବଦ୍ଧ ଭାବେ ।
04.28.42
ହତ= ନଷ୍ଟ; କାସାର= ଜଳାଶୟ; ପୁଷ୍ପାସବ= ମହୁ; L. Kabi 20230517

ହର୍ଷେ ଗଜେନ୍ଦ୍ର ପ୍ରହର୍ଷେ ଗବେନ୍ଦ୍ର
ଆଳସ୍ୟ-ବିଶ୍ରାନ୍ତ ବନେ ମୃଗେନ୍ଦ୍ର
ଶୋଭେ ଗିରୀନ୍ଦ୍ର ସ୍ଥିର ବାସୁରେନ୍ଦ୍ର
କ୍ରୀଡନ୍ତି ଅମ୍ଭୋଦ ଜଳେ ସୁରେନ୍ଦ୍ର ।
04.28.43
ଗବେନ୍ଦ୍ର= ଷଣ୍ଢ; ମୃଗେନ୍ଦ୍ର= ସିଂହ; ବାସୁରେନ୍ଦ୍ର= (ବାସୁରା/ପୃଥିବୀର) ରାଜାମାନେ; ଅମ୍ଭୋଦ= ମେଘ; ସୁରେନ୍ଦ୍ର= ଦେବରାଜ ଇନ୍ଦ୍ର;
L. Kabi 20230517

ବିସ୍ଫୂର୍ଜ ରତ୍ନାକରତୁଲ୍ୟ ମେଘ
ବ୍ୟୋମସ୍ଥଳେ ବାର୍ଦ୍ଦଳ ଶୀଘ୍ରଗାମୀ
ବର୍ଷା-ପ୍ରସାଦେ ଭରି ବିଲ୍ୱ-ବାପୀ
ପ୍ଲାବନ୍ତି ସମ୍ପୂର୍ଣ୍ଣ ମହାଧରିତ୍ରୀ ।
04.28.44
ବିସ୍ଫୂର୍ଜ= ଗର୍ଜୁଥିବା; ରତ୍ନାକରତୁଲ୍ୟ= ସମୁଦ୍ର ପରି; ବାର୍ଦ୍ଦଳ= ବାଦଲ, ମେଘ; ପ୍ରସାଦ= ଦୟା, ଦାନ; ବିଲ୍ୱ= ପୋଖରୀ; ବାପୀ= ହ୍ରଦ;
L. Kabi 20230518

ପର୍ଯ୍ୟାପ୍ତ ବର୍ଷା-ଅସରା ପ୍ରହାରେ
ମେଘାରି ଦୁର୍ଘୋଷ ରଚି ପ୍ରଧାବେ ।
ପ୍ରଭ୍ରଷ୍ଟତୀରା ତଟିନୀ ସୁବେଗା
ଅନ୍ୱେଷି ଅଗ୍ରେ ନବ ନିମ୍ନମାର୍ଗ ।
04.28.45
ମେଘାରି= ପବନ; ଦୁର୍ଘୋଷ= ଗର୍ଜନ; ପ୍ରଧାବନ= ଦଉଡିବା; ପ୍ରଭ୍ରଷ୍ଟତୀରା= ଯାହାର ତୀର (କୂଳ) ଭାଙ୍ଗି ଯାଇଛି; ସୁବେଗା= ପ୍ରଖର ବେଗସମ୍ପନ୍ନା; ଅଗ୍ରେ= ଆଗକୁ; ନିମ୍ନମାର୍ଗ=ଗଡାଣିଆ ବାଟ;
L. Kabi 20230518

ମନୁଷ୍ୟ ମଧ୍ୟେ ମନୁଜେନ୍ଦ୍ର ତୁଲ୍ୟ
    ଦେବେନ୍ଦ୍ରଦତ୍ତାମ୍ବୁ-ବିଳମ୍ବ ଲାଭେ
ଜୀମୂତ-କୁମ୍ଭେ ସଲିଳାଭିଷେକେ
    ଦର୍ଶାନ୍ତି ଶୈଳେନ୍ଦ୍ର ପରିଗ୍ରହଶ୍ରୀ ।
    04.28.46
ମନୁଜ-ଇନ୍ଦ୍ର= ମଣିଷ ରଜା; ଦେବେନ୍ଦ୍ରଦତ୍ତାମ୍ବୁ= ଇନ୍ଦ୍ରଙ୍କ ଦତ୍ତ ଜଳ; ବିଳମ୍ବ= ଉପହାର; ଜୀମୂତ-କୁମ୍ଭେ= ମେଘ ରୂପକ ମାଠିଆରେ; ସଲିଳାଭିଷେକ= ଜଳାଭିଷେକ; ଶୈଳେନ୍ଦ୍ର= ପର୍ବତ; ପରିଗ୍ରହ= ସମ୍ପତ୍ତି;
L. Kabi 20230518

ଆଚ୍ଛନ୍ନ ମେଘେ ଗଗନେ ତମୋଘ୍ନ
    ନକ୍ଷତ୍ରମାଳା ସହ ଦୃଷ୍ଟି ପାରେ ।
ବିଶ୍ୱମ୍ଭରା ଧାବମତୀ ସ୍ୱମାର୍ଗେ
    ଅନ୍ଧାର ଗର୍ଭେ ଅବଲୁପ୍ତ ସାରା ।
    04.28.46
ତମୋଘ୍ନ= ସୂର୍ଯ୍ୟ; ବିଶ୍ୱମ୍ଭରା= ପୃଥିବୀ; ଧାବମତୀ= ଧିବିତା; ଅବଲୁପ୍ତ= ହଜି ଯାଇଛି;
L. Kabi 20230518

ଅତ୍ୟୁଚ୍ଚ ପାରାବତ ଶୃଙ୍ଗ ରାଜି
    ବର୍ଷାଜଳେ ଧୌତ ବିଦୀପ୍ତ ସର୍ବେ ।
ସେ ପର୍ବତେ ଦୀର୍ଘ ଜଳପ୍ରପାତ
    ମୁକ୍ତାର ଆଲମ୍ବିତ ସୂତ୍ର ଲାଗେ ।
    04.28.48
ପାରାବତ= ପର୍ବତ; ଆଲମ୍ବିତ= ଝୁଲୁଥିବା;
L Kabi 20230518

ଶୈଳୋପଳେ ପ୍ରସ୍ଖଳମାନଧାରା
    ଶୈଳୋତ୍ତମେ ତୀବ୍ରତର ପ୍ରପାତେ
ଗର୍ତ୍ତେଶ ମଧ୍ୟେ ଶତପତ୍ତ୍ର ନାଦେ
    ଉତ୍କୀର୍ଣ୍ଣ ମାଣିକ୍ୟର ହାର ଯେହ୍ନେ ।
    04.28.49
ଶୈଳୋପଳ= ପ୍ରସ୍ତରଖଣ୍ଡ; ପ୍ରସ୍ଖଳମାନ= ଖସରି ପଡୁ ଥିବା; ଶୈଳୋତ୍ତମ= ବିଶାଳପର୍ବତ; ଗର୍ତ୍ତେଶ= ଗୁମ୍ଫା; ଶତପତ୍ତ୍ର= ମୟୂର; ଉତ୍କୀର୍ଣ୍ଣ= ଛିଣ୍ଡାଫୋପଡା;
L. Kabi 20230519

ତୀବ୍ର ପ୍ରବାହୀ ବିପୁଳ ପ୍ରପାତେ
ନିର୍ଧୌତ ପୃଥ୍ୱୀଧର-ଶୃଙ୍ଗରାଜି
ମୁକ୍ତାର ସଂସୃଷ୍ଟି ପରି ପ୍ରତୀତ
ବିସ୍ତୀର୍ଣ୍ଣ ଗର୍ତା ପରିପୂର୍ଣ୍ଣ ଲୋକେ ।
04.28.50
ପ୍ରପାତ= ଜଳପ୍ରପାତ; ନିର୍ଧୌତ= ପରିଷ୍କୃତ; ସଂସୃଷ୍ଟି= ସଂଗ୍ରହ; ପ୍ରତୀତ= ଜଣା ଯାଏ; ଗର୍ତା= ଗୁମ୍ଫା; ଲୋକ= କ୍ଷେତ୍ର, ଅଞ୍ଚଳ;
L. Kabi 20230519

ସମ୍ଭୋଗ-ଆମର୍ଦନ ହେତୁ ଛିନ୍ନ
ମୁକ୍ତାର ମାଳା ତନୁତୁମ୍ର ଖଣ୍ଡେ
ସ୍ୱର୍ଗସ୍ଥ ନାରୀଙ୍କ ଶରୀରୁ ଭୂମେ
ବିକ୍ଷିପ୍ତ ଲାଗେ ଘନ-ନୀରଧାରା ।
04.28.51
ଆମର୍ଦନ= ଘର୍ଷଣ, ଦଳାଘଷା; ତନୁତୁମ୍ର= ଛୋଟ ଓ ବଡ;
L. Kabi 20230519

ପକ୍ଷୀ ସ୍ୱନୀଡେ ଚଳିବେ ବିରାମେ
ଶ୍ରୀବାସ ଯେବେ ବୁଜିବେ ସ୍ୱନେତ୍ର
ଉନ୍ମୋଚନେ ବ୍ୟାପୃତ ମାଳତୀଏ
ତେବେ ନିଶୀହ୍ୟା ବୁଝିବ ପ୍ରବିଷ୍ଟା ।
04.28.52
ଶ୍ରୀବାସ= ପଦ୍ମ; ନିଶୀହ୍ୟା= ରାତ୍ରି;
L. Kabi 20230521

ଭୂପାଳମାନେ ନ କରନ୍ତି ଯାତ୍ରା
ସେନା ବିରାମେ ରହିବା଼ର ବେଳା
ରାସ୍ତା଼ର ଏ ଦୁଷ୍କରତା ପ୍ରଭାବେ
ରାଜନ୍ୟବର୍ଗେ ସ୍ଥିତ ବୈରଭାବ ।
04.28.53
ଭୂପାଳ= ରାଜା; ରାଜନ୍ୟବର୍ଗେ= ରାଜାମାନଙ୍କ ଭିତରେ; ସ୍ଥିତ= ସ୍ଥଗିତ;
L. Kabi 20230521

ଏ ଭାଦ୍ରମାସେ ବିଧି ବେଦପାଠ,
ଯେତେ ସବୁ ବ୍ରାହ୍ମଣ ଜାତି ମଧ୍ୟେ
ସାମ ପ୍ରଗାଣେ ଅଛି ଯାର ଇଚ୍ଛା
ସର୍ବେ ସମାରୋହ କରନ୍ତି ହର୍ଷେ ।
04.28.54
ପ୍ରଗାଣ= ଗାୟନ;
L. Kabi 20230521

ଆଷାଢ ଅଭ୍ୟାଗମ ନୋହୁ ନିଶ୍ଚେ
ଭୂମୀନ୍ଦ୍ର ଧୀମାନ୍ ଭରତ ସ୍ୱରାଜ୍ୟେ
ବର୍ଷାର ଆବଶ୍ୟକ ବସ୍ତୁ ରାଜି
ଯତ୍ନେ ଥିବେ କୋଶଳରେ ରଖାଇ ।
04.28.55
ଭୂମୀନ୍ଦ୍ର= ରାଜା; ଧୀମାନ୍= ବୁଦ୍ଧିମାନ୍; ଭରତ= କୋଶଳର ରାଜା;
L. Kabi 20230521

ପ୍ରତ୍ୟାଗମେ ମୋର ଯଥା ଅଯୋଧ୍ୟା-
ବାସୀଙ୍କ କଣ୍ଠେ ଥିବ ହର୍ଷ ଗାଥା
ଏବେ ତଥା ସେ ସରଯୁ ପ୍ରବାହେ
ନିଶ୍ଚେ ସମୁଦ୍ଭୂତ ଥିବ ପ୍ରବେଗ ।
04.28.56
ପ୍ରତ୍ୟାଗମ= ପ୍ରତ୍ୟାବର୍ତ୍ତନ; ସରଯୁ= ଅଯୋଧ୍ୟାର ନଦୀ ବିଶେଷ; ସମୁଦ୍ଭୂତ= ପ୍ରବର୍ଦ୍ଧିତ; ପ୍ରବେଗ= ବେଗ;
L. Kabi 20230522

ଶତ୍ରୁଙ୍କ ନାଶେ ନ ଥିବାରୁ ଶଙ୍କା
ସୁବ୍ୟାପ୍ତ ରାଜ୍ୟେ ରହି ସୁପ୍ରତିଷ୍ଠ
ସଦ୍ୟା ସୁଭାର୍ଯ୍ୟା ଲଭି ତାର ସଙ୍ଗେ
ସୁଗ୍ରୀବ ଚିତ୍ତେ ଥିବ ହର୍ଷ ନିଶ୍ଚେ ।
04.28.57
ସୁବ୍ୟାପ୍ତ= ବିଶାଳ; ସୁପ୍ରତିଷ୍ଠ= (ରାଜା ଭାବେ) ପ୍ରତିଷ୍ଠିତ; ସଦ୍ୟା ସୁଭାର୍ଯ୍ୟା= fresh, sweet wife;
L. Kabi 20230522

ମୋ ଭାଗ୍ୟଦୋଷେ ମୁହିଁ ଛିନ୍ନଦାର
ବିଛିନ୍ନ ସିଂହାସନ ମୋଠୁ ରାଜ୍ୟେ
ସ୍ରୋତ୍ୟାର ଉପ୍ଲାବିତ ଆର୍ଦ୍ରବେଳା
ପ୍ରାୟେ ମୁଁ ଶୋକେ ଅଣି ସିକ୍ତ ଚିତ୍ତେ ।
04.28.58
ଛିନ୍ନଦାର= ଭାର୍ଯ୍ୟାଚ୍ୟୁତ; ସ୍ରୋତ୍ୟା= ନଦୀ; ଉପ୍ଲାବିତ= ଜଳମଗ୍ନ; ଆର୍ଦ୍ରବେଳା= ଓଦା କୂଳ; ସିକ୍ତ= ଭିଜା;
L. Kabi 20230522

ବିସ୍ତୀର୍ଣ୍ଣ ଶୋକେ ଅଭିଭୂତ ମର୍ମେ
ଅଗ୍ରେ ପ୍ରବର୍ଷା ଅତି ଶକ୍ତିଯୁକ୍ତା
ସର୍ବାଗ୍ରତଃ ରାବଣ ବୀର ଶତ୍ରୁ
ନିଷ୍ପାର ଲାଗେ ପୁରତଃ ସ୍ୱକାର୍ଯ୍ୟ ।
04.28.59
ବିସ୍ତୀର୍ଣ୍ଣ= ପରିବ୍ୟାପ୍ତ; ଅଗ୍ରେ= ସମ୍ମୁଖରେ; ପ୍ରବର୍ଷା= ବର୍ଷା; ସର୍ବାଗ୍ରତଃ= ସର୍ବୋପରି; ନିଷ୍ପାର= ଆପାର; ପୁରତଃ= ଆଗକୁ; ସ୍ୱକାର୍ଯ୍ୟ= ନିଜ କର୍ତ୍ତବ୍ୟ;
L. Kabi 20230522

ସୁଗ୍ରୀବ ବିଶ୍ୱସ୍ତ ସିନା ଅତୀବ
ମୋ ପାଶରେ ସେ ପ୍ରଣତ ସ୍ୱଭାବେ
ତତ୍ରାପି ବର୍ଷାରୁ ଅଗମ୍ୟ ରାସ୍ତା -
ସେ ହେତୁ କିଞ୍ଚିତ୍ କହି ନାହିଁ ତାକୁ ।
04.28.60
ପ୍ରଣତ= ବିନୀତ; ତତ୍ରାପି= ତଥାପି; ବର୍ଷାରୁ= ବର୍ଷା ହେତୁ; କିଞ୍ଚିତ୍= (କିଂ ଚିତ୍) କିଛି ବୋଲି; କହି ନାହିଁ (ଯୁଦ୍ଧଯାତ୍ରା କରିବାର) ପ୍ରସ୍ତାବ ଦେଇ ନାହିଁ;
L. Kabi 20230522

ତାହା ପରେ ଆସିଛି ସେ ବିଚାରା
ନାନାଦି ଦୁଃଖେ ରହି ଦୀର୍ଘକାଳ
ଏବେ ହିଁ ଭାର୍ଯ୍ୟାଗଣ ତାର ପାଶେ;
ଦୁଷ୍ପାର ଯାତ୍ରା, କହୁ ନାହିଁ ତାକୁ ।
04.28.61
ତାହା ପରେ= ତା ଛଡା; ଦୁଷ୍ପାର ଯାତ୍ରା= ମୋ କଠୋର ଯୁଦ୍ଧଯାତ୍ରାର planଗୁଡିକ ବିଷୟରେ;
L. Kabi 20230522

ବିଶ୍ରାମ ଶେଷେ ବୁଝି ବେଳ ହେଲା
ସୁଗ୍ରୀବ ଆପେ ରହି ମୋର ପାଶେ
ପ୍ରାପ୍ତୋପକାର ସ୍ମରି ତାର କାର୍ଯ୍ୟେ
ନିଶ୍ଚେ ଦିନେ ଲାଗିବ ଦେଖ ତୁମ୍ଭେ ।
04.28.62
ପ୍ରାପ୍ତୋପକାର= (ମୋଠୁ) ପାଇଥିବା ଉପକାର;
L. Kabi 20230522

ବିଶ୍ରାମ ଶେଷେ ବୁଝି ବେଳ ହେଲା
ସୁଗ୍ରୀବ ଆପେ ରହି ମୋର ପାଶେ
ପ୍ରାପ୍ତୋପକାର ସ୍ମରି ତାର କାର୍ଯ୍ୟେ
ନିଶ୍ଚେ ଦିନେ ଲାଗିବ ଦେଖ ତୁମ୍ଭେ ।
04.28.62
ପ୍ରାପ୍ତୋପକାର= (ମୋଠୁ) ପାଇଥିବା ଉପକାର;
L. Kabi 20230522

ତସ୍ମାତ୍ ଅପେକ୍ଷା କରି ମୁଁ ପ୍ରସନ୍ନ
ସ୍ରୋତଙ୍କ ସଙ୍ଗେ କଳି ଲାଗୁ ନାହିଁ ।
ସୁଗ୍ରୀବ ସୌଖ୍ୟେ ରହିଥାଉ ଏବେ
ସାଧୋ ! ତୁମେ ଲକ୍ଷ୍ମଣ ଥାଅ ଶାନ୍ତ ।
04.28.63
ତସ୍ମାତ୍= ତେଣୁ, ସେ ହେତୁ; ସ୍ରୋତ= ବଢନ୍ତା ନଦୀ; ସୌଖ୍ୟେ= ସୁଖରେ, ଆରାମରେ;
L. Kabi 20230522

PT0

ଛନ୍ଦ: ଉପଜାତି (ଇନ୍ଦ୍ରବଜ୍ରା+ ଉପେନ୍ଦ୍ରବଜ୍ରା)

*ତଗଣ ତଗଣ ଜଗଣ+ ଗୁରୁ & ଜଗଣ ତଗଣ ଜଗଣ+ ଗୁରୁ)*

**(221/221/121+22 & 221/221/121+22)**

ପ୍ରସ୍ତାରେ**:** 11/356 & 357

---

ପ୍ରତ୍ୟର୍ପଣେ ବୀର ଦିଏ ଶୁଝାଇ

ଯେ ତାର କାର୍ଯ୍ୟେ ହିତ ସାଧି ଥାଏ ।

କୃତଘ୍ନ ତାହାର ହିତୈଷିଚିତ୍ତେ

ଆଘାତ ଯେତେ ଲଦି ଦେଇ ପାରେ ।

04.28.64

ପ୍ରତ୍ୟର୍ପଣ= ପ୍ରତିଦାନ;

L. Kabi 20230522

ଏ ସର୍ବବାର୍ତ୍ତା ଶୁଣି ଅଗ୍ରଜଙ୍କ

କୃତାଞ୍ଜଳି, ଭ୍ରାତୃମୁଖେ ନିରେଖି

ସମସ୍ତ ଭାବେ ସୁବିନୀତ ଚିତ୍ତେ

ସୌମିତ୍ରି ଭାଷେ ଅଭିରାମ ରାମେ ।

04.28.65

ଅଗ୍ରଜ= ବଡଭାଇ, ଭାଇନା, ନାନା; କୃତାଞ୍ଜଳି= ହାତ ଯୋଡି; ସୌମିତ୍ରି= ସୁମିତ୍ରାର ଛୁଆ ବା ଲକ୍ଷ୍ମଣ; ଅଭିରାମ= କମନୀୟ ବା ସୁନ୍ଦର, handsome;

L. Kabi 20230522

ରାଜନ୍ ତୁମେ ବ୍ୟସ୍ତ ନ ହେବ ଆଦୌ

ଶରତ୍ପ୍ରତୀକ୍ଷା କର ତେଜି ଶଙ୍କା

ସୁଗ୍ରୀବ ଅଭ୍ୟାଗତ ହେବ କାଳେ

ବୈରୀ ବିନାଶେ ହୁଅ ଧୀରଚିତ୍ତ ।

04.28.66

ରାଜନ୍= ହେ ରାଜା ରାମ; ଶରତ୍ପ୍ରତୀକ୍ଷା= ଶରତ୍ ଋତୁର ପ୍ରତୀକ୍ଷା; ଶଙ୍କା= ଭୟ; ଅଭ୍ୟାଗତ ହେବ କାଳେ= ଠିକ୍ timeରେ ଆସିଯିବ; ବୈରୀ= ଶତ୍ରୁ; ଧୀରଚିତ୍ତ= ସ୍ଥିରମନା, determined;

L. Kabi 20230522

ଇତ୍ଯାର୍ଷେ ଶ୍ରୀମଦ୍ରାମା୍ଣେ ବାଲ୍ମୀକୀୟ ଆଦିକାବ୍ୟେ କିଷ୍କିନ୍ଧାକାଣ୍ଡେ ଅଷ୍ଟାବିଂଶସ୍ସର୍ଗଃ।।

**स तदा वालिनं हत्वा सुग्रीवमभिषिच्य च।**
**वसन्माल्यवतः पृष्ठे रामो लक्ष्मणमब्रवीत् । 4.28.1**

**अयं स कालस्सम्प्राप्तस्समयोऽद्य जलागमः।**
**सम्पश्य त्वं नभो मेघैस्संवृतं गिरिसन्निभैः । 4.28.2**

**शक्यमम्बरमारुह्य मेघसोपानपङ्क्तिभिः।**
**कुटजार्जुनमालाभिरलङ्कर्तुं दिवाकरम् । 4.28.4**

**सन्ध्यारागोत्थितैस्ताम्रैरन्तेष्वधिक पाण्डुरैः**
**स्निग्धैरभ्रपटच्छेदैर्बद्धव्रणमिवाम्बरम्4.28.5।।**

**मन्दमारुत निश्वासं सन्ध्याचन्दनरञ्जितम्।**
**आपाण्डुजलदं भाति कामातुरमिवाम्बरम्4.28.6।।**

**एषा घर्मपरिक्लिष्टा नववारिपरिप्लुता।**
**सीतेव शोकसन्तप्ता मही बाष्पं विमुञ्चति4.28.7**

**मेघोदरविनिर्मुक्ताः कह्लारसुखशीतलाः।**
**शक्यमञ्जलिभिः पातुं वाताः केतकिगन्धिनः4.28.8**

**एष फुल्लार्जुनश्शैलः केतकैरधिवासितः।**
**सुग्रीव इव शान्तारिर्धाराभिरभिषिच्यते । 4.28.9**

**मेघकृष्णाजिनधरा: धारायज्ञोपवीतिनः।**
**मारुतापूरितगुहाः प्राधीता इव पर्वताः । 4.28.10**

**कशाभिरिव हैमीभिर्विद्युद्भिरिवताडितम्।**
**अन्तस्स्तनितनिर्घोषं सवेदनमिवाम्बरम् । 4.28.11**

**नीलमेघाश्रिता विद्युत्स्फुरन्ती प्रतिभाति मा।**

स्फुरन्ती रावणस्याङ्के वैदेहीव तपस्विनी 4.28.12

इमास्ता मन्मथवतां हिताः प्रतिहता दिशः।
अनुलिप्ता इव घनैर्नष्टग्रहनिशाकराः । 4.28.13

चिद्बाष्पाभिसंरुद्धान् वर्षागमसमुत्सुकान्।
कुटजान्पश्य सौमित्रे पुष्पितान्गिरिसानुषु ।4.28.14
मम शोकाभिभूतस्य कामसन्दीपनान् स्थितान्।

रजः प्रशान्तं सहिमोऽद्य वायु
निर्दाघदोषप्रसराः प्रशान्ताः।
स्थिता हि यात्रा वसुधाधिपानां
प्रवासिनो यान्ति नरास्स्वदेशान् । 4.28.15

सम्प्रस्थिता मानसवासलुब्धाः
प्रियान्विताः सम्प्रति चक्रवाकाः।
अभीक्ष्णवर्षोदकविक्षतेषु
यानानि मार्गेषु न सम्पतन्ति । 4.28.16

क्वचित्प्रकाशं क्वचिदप्रकाशं
नभः प्रकीर्णाम्बुधरं विभाति।
क्वचित्क्वचित्पर्वतसन्निरुद्धं
रूपं यथा शान्तमहार्णवस्य । 4.28.17

व्यामिश्रितं सार्जकदम्बपुष्पै
र्नवं जलं पर्वतधातुताम्रम्।
मयूरकेकाभिरनुप्रयातं
शैलापगाश्शीघ्रतरं वहन्ति । 4.28.18

रसाकुलं षट्पदसन्निकाशं
प्रभुज्यते जम्बुफलं प्रकामम्।
अनेकवर्णं पवनावधूतं
भूमौ पतत्याम्रफलं विपक्वम् । 4.28.19

विद्युत्पताकास्सबलाकमालाः
शैलेन्द्रकूटाकृतिसन्निकाशाः।
गर्जन्ति मेघाः समुदीर्णनादाः
मत्ता गजेन्द्रा इव संयुगस्थाः । 4.28.20

वर्षोदकाप्यायितशाद्वलानि
प्रवृत्तनृत्तोत्सवबर्हिणानि।
वनानि निर्वृष्टवलाहकानि
पश्यापराह्णेष्वधिकं विभान्ति ।4.28.21

समुद्वहन्त स्सलिलातिभारं
बलाकिनो वारिधरा नदन्तः।
महत्सु शृङ्गेषु महीधराणां
विश्रम्य विश्रम्य पुनः प्रयान्ति4.28.22।।

मेघाभिकामा परिसम्पतन्ती
सम्मोदिता भाति बलाकपङ्क्तिः।
वातावधूता वरपौण्डरीकी
लम्बेव माला रचिताम्बरस्य । 4.28.23

बालेन्द्रगोपान्तरचित्रितेन
विभाति भूमिर्नवशाद्वलेन।
गात्रानुपृक्तेन शुकप्रभेण
नारीव लाक्षोक्षितकम्बलेन । 4.28.24

निद्रा शनैः केशवमभ्युपैति
द्रुतं नदी सागरमभ्युपैति।
हृष्टा बलाका घनमभ्युपैति
कान्ता सकामा प्रियमभ्युपैति । 4.28.25

जाता वनान्ताश्शिखिसम्प्रनृत्ता
जाताः कदम्बाः सकदम्बशाखाः।
जाता वृषा गोषु समानकामा

जाता मही सस्यवनाभिरामा । 4.28.26

वहन्ति वर्षन्ति नदन्ति भान्ति
ध्यायन्ति नृत्यन्ति समाश्वसन्ति।
नद्यो घना मत्तगजा वनान्ताः
प्रियाविहीनाश्शिखिनः प्लवङ्गमाः 4.28.27

प्रहर्षिताः केतकपुष्पगन्ध
माघ्राय हृष्टा वननिर्झरेषु।
प्रपातशब्दाकुलिता गजेन्द्रा
स्सार्धं मयूरै स्समदा नदन्ति ।4.28.28

धारानिपातैरभिहन्यमानाः
कदम्बशाखासु विलम्बमानाः।
क्षणार्जितं पुष्परसावगाढं
शनैर्मदं षट्चरणास्त्यजन्ति 4.28.29

अङ्गारचूर्णोत्करसन्निकाशैः
फलैस्सुपर्याप्तरसैस्समृद्धैः।
जम्बूद्रुमाणां प्रविभान्ति शाखाः
निलीयमाना इव षट्पदौघैः । 4.28.30

तटित्पताकाभिरलङ्कृताना
मुदीर्णगम्भीरमहारवाणाम्।
विभान्ति रूपाणि बलाहकानां
रणोद्यतानामिव वानरणानाम् । 4.28.31

मार्गानुगश्शैलवनानुसारी
सम्प्रस्थितो मेघरवं निशम्य।
युद्धाभिकामः प्रतिनादशङ्की
मत्तो गजेन्द्रः प्रतिसन्निवृत्तः । 4.28.32

क्वचित्प्रगीता इव षट्पदौघैः

क्वचित्प्रनृत्ता इव नीलकण्ठैः।
क्वचित्प्रमत्ता इव वारणेन्द्रै
र्विभान्त्यनेकाश्रयिणो वनान्ताः । 4.28.33

कदम्बसर्जार्जुनकन्दलाढ्या
वनान्तभूमिर्नववारिपूर्णा।
मयूरमत्ताभिरुतप्रनृत्तै
रापानभूमिप्रतिमा विभाति । 4.28.34

मुक्तासकाशं सलिलं पतद्वै
सुनिर्मलं पत्रपुटेषु लग्नम्।
हृष्टा विवर्णच्छदना विहङ्गा
स्सुरेन्द्रदत्तं तृषिताः पिबन्ति । 4.28.35

षट्पादतन्त्रीमधुराभिधानं
प्लवङ्गमोदीरितकण्ठतालम्।
आविष्कृतं मेघमृदङ्गनादै
र्वनेषु सङ्गीतमिव प्रवृत्तम् ।4.28.36

क्वचित्प्रनृत्तै: क्वचिदुन्नदद्भिः
क्वचिच्च वृक्षाग्रनिषण्णकायैः।
व्यालम्बबर्हाभरणैर्मयूरै
र्वनेषु सङ्गीतमिव प्रवृत्तम् । 4.28.37

स्वनैर्घनानां प्लवगाः प्रबुद्धाः
विहाय निद्रां चिरसन्निरुद्धाम्।
अनेकरूपाकृतिवर्णनादाः
नवाम्बुधाराभिहता नदन्ति । 4.28.38

नद्यस्समुद्वाहितचक्रवाका
स्तटानि शीर्णान्यपवाहयित्वा।
दृप्ता नवप्राभृतपूर्णभोगाः
द्रुतं स्वभर्तारमुपोपयान्ति । 4.28.39

नीलेषु नीला: प्रविभान्ति सक्ताः
मेघेषु मेघा नववारिपूर्णाः।
दवाग्निदग्धेषु दवाग्निदग्धा
श्शैलेषु शैला इव बद्धमूलाः । 4.28.40

नीलेषु नीला: प्रविभान्ति सक्ताः
मेघेषु मेघा नववारिपूर्णाः।
दवाग्निदग्धेषु दवाग्निदग्धा
श्शैलेषु शैला इव बद्धमूलाः । 4.28.40

प्रहृष्टसन्नादितबर्हिणानि
सशक्रगोपाकुलशाद्वलानि।
चरन्ति नीपार्जुनवासितानि
गजास्सुरम्याणि वनान्तराणि । 4.28.41

नवाम्बुधाराहतकेसराणि
द्रुतं परित्यज्य सरोरुहाणि।
कदम्बपुष्पाणि सकेसराणि
नवानि हृष्टा भ्रमराः पतन्तिः । 4.28.42

मत्ता गजेन्द्रा मुदिता गवेन्द्रा
वनेषु विश्रान्ततरा मृगेन्द्रा।
रम्या नगेन्द्रा निभृता नरेन्द्राः
प्रक्रीडितो वारिधरैस्सुरेन्द्रः ।4.28.43

मेघास्समुद्धूतसमुद्रनादाः
महाजलौघैर्गगनावलम्बाः।
नदीस्तटाकानि सरांसि वापी
र्महीं च कृत्स्नामपवाहयन्ति । 4.28.44

वर्षप्रवेगा विपुलाः पतन्ति
प्रवान्ति वातास्समुदीर्णघोषाः।
प्रणष्टकूलाः प्रवहन्ति शीघ्रं

नद्योजलैर्विप्रतिपन्नमार्गाः । 4.28.45

नरैर्नरेन्द्रा इव पर्वतेन्द्रा
स्सुरेन्द्रदत्तैः पवनोपनीतैः।
घनाम्बुकुम्भैरभिषिच्यमाना
रूपं श्रियं स्वामिव दर्शयन्ति ।4.28.46

घनोपगूढं गगनं सतारं
न भास्करो दर्शनमभ्युपैति।
नवैर्जलौघैर्धरणी विसृप्ता
तमो विलिप्ता न दिशः प्रकाशाः 4.28.47

महान्ति कूटानि महीधराणां
धाराभिधौतान्यधिकं विभान्ति।
महाप्रमाणैर्विपुलैः प्रपातै
र्मुक्ताकलापैरिव लम्बमानैः । 4.28.48

शैलोपलप्रस्खलमानवेगा
श्शैलोत्तमानां विपुलाः प्रपाताः।
गुहासु सन्नादितबर्हिणासु
हारा विकीर्यन्त इवावभान्ति । 4.28.49

शीघ्रप्रवेगा विपुलाः प्रपाताः
निर्धौतशृङ्गोपतला गिरीणाम्।
मुक्ताकलापप्रतिमाः पतन्तो
महागुहोत्सङ्गतलैर्ध्रियन्ते 4.28.50।।

सुरतामर्दविच्छिन्ना- स्स्वर्गस्त्रीहारमौक्तिकाः।
पतन्ति चातुला दिक्षु तोयधारास्समन्ततः 4.28.51

निलीयमानैर्विहगै- र्निमीलद्भिश्च पङ्कजैः।
विकसन्त्या च मालत्या गतोऽस्तं ज्ञायते रविः ।4.28.52

वृत्ता यात्रा नरेन्द्राणां सेना प्रतिनिवर्तते।
वैराणि चैव मार्गाश्च सलिलेन समीकृताः ।2.28.53

मासि प्रोष्ठपदे ब्रह्म ब्राह्मणानां विवक्षताम्।
अयमध्यायसमय- स्सामगानामुपस्थितः 4.28.54

निवृत्तकर्मायतनो नूनं सञ्चितसञ्चयः।
आषाढीमभ्युपगतो भरतः कोसलाधिपः 4.28.55

नूनमापूर्यमाणाया- स्सर्वव्या वर्धते रयः।
मां समीक्ष्य समायान्त- मयोध्याया इव स्वनः 4.28.56

इमास्फीतगुणा वर्षा- स्सुग्रीवस्सुखमश्नुते।
विजितारिः सदारश्च राज्ये महति च स्थितः 4.28.57

अहं तु हृतदारश्च राज्याच्च महतश्च्युतः।
नदीकूलमिव क्लिन्न- मवसीदामि लक्ष्मण। 4.28.58

शोकश्च मम विस्तीर्णो वर्षाश्च भृशदुर्गमाः।
रावणश्च महान् शत्रु- रपारं प्रतिभाति मे ।4.28.59

अयात्रां चैव दृष्ट्वेमां मार्गांश्च भृशदुर्गमान्।
प्रणते चैव सुग्रीवे न मया किञ्चिदीरितम् ।4.28.60

अपि चातिपरिक्लिष्ट चिराद्दारैस्समागतम्।
आत्मकार्यगरीयस्त्वा- द्वक्तुं नेच्छामि वानरम् ।
4.28.61

स्वयमेव हि विश्रम्य ज्ञात्वा कालमुपागतम्।
उपकारं च सुग्रीवो वेत्स्यते नात्र संशयः ।
4.28.62

स्वयमेव हि विश्रम्य ज्ञात्वा कालमुपागतम्।
उपकारं च सुग्रीवो वेत्स्यते नात्र संशयः ।
4.28.62

तस्मात्कालप्रतीक्षोऽहं स्थितोऽस्मि शुभलक्षण।
सुग्रीवस्य नदीनां च प्रसादमनुपालयन् ।
4.28.63

उपकारेण वीरस्तु प्रतिकारेण युज्यते।
अकृतज्ञोऽप्रतिकृतो हन्ति सत्त्ववतां मनः
4.28.64

अथैवमुक्तः प्रणिधाय लक्ष्मणः
कृताञ्जलिस्तत्प्रतिपूज्य भाषितम् ।
उवाच रामं स्वभिरामदर्शनं
प्रदर्शयन्दर्शनमात्मनश्शुभम् । 4.28.65

यथोक्तमेतत्तव सर्वमीप्सितं
नरेन्द्र कर्ता नचिराद्धरीश्वरः।
शरत्प्रतीक्षः क्षमतामिमं भवान्
जलप्रपातं रिपुनिग्रहे धृतः । 4.28.66

इत्यार्षे श्रीमद्रामायणे वाल्मीकीय आदिकाव्ये किष्किंधाकाण्डे अष्टाविंशस्सर्गः।।

====================

# କବିତା
# ବର୍ଷାଗମେ
## (ବାଲ୍ମୀକି ରାମାୟଣରେ)



**କବିତାର ବିଷୟ:** କିସ୍କିନ୍ଧା କାଣ୍ଡ ସର୍ଗ 28ରେ ଶ୍ରୀରାମଙ୍କ ଦ୍ୱାରା ଅନୁଜ ଲକ୍ଷ୍ମଣ ଆଗରେ ବର୍ଷାଋତୁ ବିଷୟକ ବର୍ଣ୍ଣନ । ଉକ୍ତ ସର୍ଗର ସମସ୍ତ 66ଟି ପଦର ଅନୁବାଦ ଏଥିରେ ଅଛି । ଅନୁଦିତ ଶେଷ ପଦ 66 ପରେ ବାଲ୍ମୀକି ରାମାୟଣରୁ ମୂଳ ରଚନା ସମସ୍ତ 66ଟି ସଂସ୍କୃତ ପଦ ମଧ୍ୟ ସଂସ୍କୃତପ୍ରିୟଙ୍କ ନିମନ୍ତେ ଦିଆ ଯାଇଛି ।

**ପ୍ରଯୁକ୍ତ ଛନ୍ଦ:** ଏହି ଅନୁବାଦରେ ମୁଖ୍ୟତଃ ଇନ୍ଦ୍ରବଜ୍ରା ଛନ୍ଦ ପ୍ରଯୁକ୍ତ ହେଇ ଥିଲେ ହେଁ ପଦ 17 64 65 ଓ 66ରେ ଦୁଇଟି ଛନ୍ଦର - ଇନ୍ଦ୍ରବଜ୍ରା ଛନ୍ଦ ସହ ଉପେନ୍ଦ୍ରବଜ୍ରା ଛନ୍ଦର ପାଦମାନ ମିଶ୍ରିତ ଅଛି । ଫଳସ୍ୱରୂପ ଏହି 4ଟି ପଦ ଇନ୍ଦ୍ରବଜ୍ରା ଓ ଉପେନ୍ଦ୍ରବଜ୍ରା ଛନ୍ଦର ମିଶ୍ରଣର ଉତ୍ପନ୍ନ ଉପଜାତିର ଛନ୍ଦୋବିଶେଷ । ଏହି ମିଶ୍ରଣ ଶାସ୍ତ୍ରସମ୍ମତ ଅଟେ ।

**ଛନ୍ଦୋଲକ୍ଷଣ:** ଇନ୍ଦ୍ରବଜ୍ରା ଓ ଉପେନ୍ଦ୍ରବଜ୍ରା ଛନ୍ଦର ଲକ୍ଷଣ ଏହିପରି —
**ଇନ୍ଦ୍ରବଜ୍ରା:** ତୌ ଜଗୌ ଗଃ ଅର୍ଥାତ୍ ତଗଣ ତଗଣ ଜଗଣ ଓ ଦୁଇଟି ଗୁରୁବର୍ଣ୍ଣ ଆର୍ଥାତ୍ 221/221/121 +22 - ଏହିପରି ଏଗାର ବର୍ଣ୍ଣ ।
**ଉପେନ୍ଦ୍ରବଜ୍ରା:** ଜତୌ ଜଗୌ ଗଃ ଅର୍ଥାତ୍ ଜଗଣ ତଗଣ ଜଗଣ ଓ ଦୁଇଟି ଗୁରୁବର୍ଣ୍ଣ ଅର୍ଥାତ୍ 121/221/121 +22 - ଏହିପରି ଏଗାର ବର୍ଣ୍ଣ ।
**ପ୍ରତୀକ:** ଏଥିରେ 1 ଲଘୁବର୍ଣ୍ଣର ଓ 2 ଗୁରୁବର୍ଣ୍ଣର ପ୍ରତୀକ ।

**ବିନୀତ:** **ଲଲାଟେନ୍ଦୁ କବି**
**(ଅନୁବାଦକ)**

**ଭୁବନେଶ୍ୱର** **May 22, 2023**



https://www.valmiki.iitk.ac.in/sloka?field_kanda_tid=4&language=dv&field_sarga_value=28